# FUTURE SAHIB.

# ଫିଉଚର ସାହେବ ।

—❈⁂❈—

ଭବ ସାହେବର ରୂପ ଗୁଣ ଛଟା ।
ଦେଖି ଶୁଣି ଭାଇ ମନ ନୋହୁ ମୋହା ।

—❈⁂❈—

*SECOND EDITION.*

---


CUTTACK.

Printed at the Victoria Press.
Orissa Printing Corporation.

1892.

ଖଣ୍ଡର ମୂଲ୍ୟ ଦୁଇ ଦୁଇ ପଇସା ।

## ବିଶେଷ ଦ୍ରଷ୍ଟବ୍ୟ ।

ଏହି ପୁସ୍ତକାନ୍ତର୍ଗତ ପଦ୍ୟାବଳୀ, ଓଡ଼ିଆ ଏବଂ ଇଂରାଜୀ ଉଭୟ ଭାଷାଦ୍ୱାରା ରଚିତ; ଅତଏବ ପାଠକବର୍ଗଙ୍କୁ ଅନୁରୋଧ ଯେ ସେମାନେ ପାଠ କରିବା ସମୟରେ ଇଂରେଜୀ ଶବ୍ଦର୍ ପ୍ରକୃତ ଉଚ୍ଚାରଣ ପ୍ରତି ବିଶେଷରୂପେ ଦୃଷ୍ଟିପାତ କରିବେ ।

ଶ୍ରୀ ପିଲ୍‌ଚର ସାହେବ ।

# ଫିଡ୍‌ଟରର ସାହେବ ।

ଏଥର ମଲେ ସାହେବ ହେବି ।
ଲାଲ ମୁଣ୍ଡରେ କେପ୍ ଦେବି ।

---

୧

ଏଥର ମଲେ ସାହେବ ହେବ ।
ଲାଲ ମୁଣ୍ଡକେ କେପ୍ ଦେବ ।
କର୍କଟି ଫ୍ଲାନେଲ୍ ପିଣ୍ଟୁଲୁନ କର ନାଇଟ୍‌ଡେ ପିନ୍ଧିବ ।

୨

ଗିନିଫାଉଲ୍‌ଙ୍କ କଣ ମାରିବ ।
ଟେବଲ ଉପରେ ଖାନା ଖାଇବ ।
ନେଟିବ୍ ଦେଖିଲେ ନିକଟେ ଆସିଲେ ଡର୍ଟୀ ବୋଲି ଦୂରୁଦୂରୁ କରିବ ।

୩

ମର୍ନିଙ୍ଗ ଇଭ୍‌ନିଙ୍ଗ ଓ୍ୱାକ୍ କାଳରେ ।
ସ୍ପାନିଏଲ ଡଗ ଥିବ ସଙ୍ଗରେ ।
ଇଷ୍ଟରରମାନ କରି ଭୁଟ୍ଟଲାନ କିସ୍ ଦେଉଥିବ ତାର ମୁଖରେ ।

୪

ଇୟୁରୋପିୟାନ୍ ଯେବେ ଦେଖିବ ।
ଝିଙ୍କଣ୍ଡି ମଙ୍ଗସ ତହିଁ ମାରବ ।
ଗୁଡବାଇ ପ୍ରେଣ୍ଡ ବୋଲିଣ ଷେକ୍ହେଣ୍ଡ କର ଲେଟ୍ ମି ଗୋ ବୋଲି ଚଳିବ ।

୫

ମୁରଲୀ ମୁଖରେ ସ୍ମୋକ ଛାଡବ ।
ପେଟ ବାଜୀ ଖଣ୍ଡି କାଖେ ଯାକିବ ।
ସରଟ୍ ହେଣ୍ଡକୁ ପକେଟେ ପୁରାଇ ହୁଇଟିକ ସୁଧା ଶଯରୁ ଯିବ ।

୬

ଶଯରୁ ଉଠିଣ କରିବାବେଳେ ।
ଅଲ ଦ ପିପଲ ଦେଖିବେ ତୋଲେ ।
ଚଳ ଚଳ ଦେବ ଅବଧାର ମୂର୍ତ୍ତି ଯାଉଛନ୍ତି ଆହା ଆନନ୍ଦ ଭେଲେ ।

୭

ଟ୍ରାଭେଲ କରିବ ମୁଁ ଥରେ ଥରେ ।
ଗଉଡମାନଙ୍କ ଦେଶ ମଧ୍ୟରେ !
ଗୋପାଳ ଅଙ୍ଗନା ସବୁ ହେବେ ଛନ୍ନା ଧୋବଲ୍ଲ ସାହେବ ରୂପ ଦେଖି ରେ ।

୮

ହ୍ୱଅର ହ୍ୱଅର ଡାକବ ମୁହିଁ ।
କନ୍ଦ୍ରୁ ବାମା ଯିବେ ଭ୍ୟୁପ୍ସ ପଲ'ଇ ।
ସେ ପିଓରେ ଭାବ ପାଇବେ କ ଠାବ ଫ୍ଳସ୍ କୈଟବ ଗଉଡେ କାହିଁ ।

୯

ଇଉରେପିଯ୍ୟାନ ସଙ୍ଗ ନ ଧର ।
ଗୁଡ଼ ଫ୍ରେସ ଦେଖି କରବ ପୁଷ୍ପ ।
ହାଷ୍ଟନମେଣ୍ଟର ପୋର୍ଟ ଅପେ ଘାଣେ ଯହିଁ ଲୋକାଲଟି ଗୁଡ଼ହିନାସ୍ତି ।

୧୦

ସ୍ୱନସ୍ଥ ଓ୍ୟାଇଫ ସଙ୍ଗେ ଘେନବ ।
ଗୃହ ଘୋଡ଼ା କୋଚ ଛଡ଼ାଇ ଦେବ ।
ହୋଲ ଟାଉନରେ ବୁଲ ସ୍ନେହବରେ ନାସ୍ୱାଧୀନତା ଦେଖାଇ
ଦେବ ।

୧୧

ଇଠ୍ ଇଜ୍ ମାଇଂ ଟ୍ରୁଥ ଭଇ ।
ହର୍ସରେସ୍ ମୁଁ କହବ କାଇଁ ।
ସେକ୍ସପିୟ୍ରର ବାଇବେଲ୍ ବୁକ ହୋଲ ଲାଇଫରେ ଛୁଇଁବ ନାହିଁ ।

୧୨

କାମ୍ବ୍ରିଜ କଲେଜେ କଷ୍ଟ ପଢ଼ିବ ।
ସ୍ୱପ୍ନରେ ସିଭିଲସ୍ପାନ୍ ହେବ ।
କେବଳ ଭାରତ ଅଲ ମାଇଁ ହୋପ ଏଠାରେ ହାକିମୀ ଆସି କରିବ !

୧୩

ଟ୍ରେନ୍ ଓ କ୍ରୁଜରେ ଜୋକ ଚଢ଼ିବ ।
ଧସ କର କୋଠେ ଆସି ମିଳବ ।
ଭ୍ରହ୍ମଗଣ୍ଡ ମଧ୍ୟେ ସନ ଯେଉଁ ପ୍ରାପ୍ତେ, ଅମନ୍ଦଙ୍କ ମଧ୍ୟେ ସନ୍ଲମ ନେବ !

୧୪

ଅମନ୍ଦଏ ଥିବେ ହିସଲ ଠାରେ ।
ପିଅନ ରହିବେ ସବୁ ଦୁଆରେ ।
ହାଲଷ୍ଟା ପଙ୍ଖାକୁ ଅର୍ଦ୍ଦଳିବେହେଲ ଟାଣୁଥିବ ଆହା ଯେଉଁ କାଳରେ !

୧୫

ବୁଲି ଖେଳୁଥିବ ଏଯ୍ଯାର ଉହିଁ ।
ସେ ସୁଖ ସୌଭାଗ୍ୟେ ଉପମା ନାହିଁ ।
ହା ଯୁଧିଷ୍ଠିର ଦର୍ଶ ଦରବାର ଇନ୍ଦ୍ରର ଇନ୍ଦ୍ରତ୍ୱ ରହିବ କାହିଁ ।

୧୬

ପୁଅର କଉନ ମସ୍ତକପରେ ।
ଅଫିସ ଓ୍ୟାର୍କକୁ ରଖିବ ଧୀରେ ।
ନ ହେଲେ ବେଲକୁ ଲାଲ ଆଲ୍‌ଜରେ କଠାକ୍ଷ ଗୃହିଣୀ ହାଣିବ ଶିରେ ।

୧୭

ତନ୍ଦୁଁ ଯେବେ କାମ ରହିଲା ବାକି ।
ଫେଲ୍ ମୁନେ ସବୁ ମାରବ ଫାଙ୍କି ।
ଜନସେନ୍ସ ଫେଲେ କଉନ ବାବୁକୁ ଗାଳ ଦେବ ମୁହିଁ ଜଯୂନ ବାଙ୍କି ।

୧୮

କହିବ ଓ୍ୱାଲେ ସଙ୍କୋଚେ ଗୃହି ।
ହାମସେ ଗୃହ୍ଲକ ଚଲେଗା ନାହିଁ ।
ଓ୍ୱାଲଚନାମା ନାମଞ୍ଜୁର ଚେଷ୍ଟା ବାଚ ମଚ କରେ ଉଜର ଗୃହିଁ ।

୧୯

କଥାନ୍ତ ଓକିଲ ଦୁଷ୍ଟତା କରେ ।
ହସ୍ତେଡ ରୁଫିଡ୍ ଫାଇଲ ତାରେ ।
ତହିଁରୁ ବଳଲେ ଅଙ୍କସୁଦ୍ଧ କର ହିଙ୍ଗୁ ମନ୍ତ୍ର ଦେବ ମାଲୁମ ଘରେ ।

୧୦

ଯେତେବେଳେ କେହ ସୁପିରଅର ।
ଅଫିସ କରବେ ଇନକ୍ଲୁଅର ।
ଏ ବ ସି ଲଥିକ ସଞ୍ଚାର ଲକ୍ଷିବ ତାହାଙ୍କ ଚମଡା ଅଖି ଉପର ।

୧୧

ବାହାର ଷଉଟି ଦେଖିବେ ସେହ ।
ଭିତର କାଳିମା ଲୁଚବ ରହ ।
ମହାକାଳଫଳ କେମନ୍ତ ସୁନ୍ଦର ଭିତର ଜରକ କଏ ଦେଖଇ ।

୧୨

ଫାଙ୍କି ଦେଇ ମୁହିଁ ବାହା ବା ନେବ ।
ସୁପିରିଅରଙ୍କୁ ରେସ୍ପେକ୍ଟ ଦେବ ।
ତାହାଙ୍କର ଗୁଡ ଓପିନିଅନରେ କ୍ରମଶରେ ଉଚ୍ଚପଦ ଲଭିବ ।

୧୩

ନେଟିଭ୍ମାନଙ୍କୁ ପଶ୍ଚରେ କଏ ।
ଅମ୍ଭ ତାହାଙ୍କ ଦୁଃଖେ କି ଯାଏ ।
ଯାହା ଇଚ୍ଛା ତାହା ହେଉ ନା ତାଙ୍କର୍ ଅମ୍ଭ ସ୍ୱାର୍ଥି ହେଲେ ସଫଳ ହୁଏ ।

୨୪

ମାଏ ହୃଷୋକ୍ତ୍ରଠ ଅଠର ମୁହିଁ ।
ଏକଥାଟି କେହୁ ଜାଣିବେ ନାହିଁ ।
ମନରେ ଜାଣନ୍ତୁ ପଞ୍ଚକେ ଦାଣ୍ଡରେ କହିଲେ ମସ୍ତକ ହାଣିବ ଯାଇଁ ।

୨୫

ହାମରା କୋଟିକୁ ଯବ କ କୋଇ ।
ମୁଲ୍ଲକାଠ ବାସ୍ତେ ଅଏଗା ରହି ।
କହୁଙ୍ଗେ ଚପରାଶି ବୋଲେ ଅଦମିକୁ ସହେବକା ଅଭି ଫୁରସଦ ନାହିଁ ।

୨୬

ନେଟିବଙ୍କ ସଙ୍ଗେ ହୋଇଲେ କଳ ।
କରବ ପ୍ରହାର ହୃଦୟ ଜାଳ ।
ଧଳା ଚମଡାରେ କଳାଲୋକଙ୍କର କେଉଁ ଅଧିକାର ମହବେ ଭାଳ ।

୨୭

କ୍ରିମିନେଲ କେସ୍ ହେଲେ ଉଦୟ ।
ଗୋରାଙ୍କ ସୁପର୍ଦ୍ଦ ହେବ ନିଶ୍ଚୟ ।
ତେବେ ମୁଁ ଉଲ୍ଲାସ ହୋଇବ ଖଲାସ ଶତେକ ଗୋରା କେତେ ଦଣ୍ଡାୟ ।

୨୮

ଯଦ କାହିଁ ପୋଷ୍ଟ ଭେକେନ୍ସ ହେବ ।
ଯେନ୍ତୁ ମୋର ଅନୁସରଣେ ଥିବ ।
ଗଭର୍ନ୍ମେଣ୍ଟ ହେଉ ପଚ୍ଛକେ ତାହାକୁ ଏହି କର୍ମେ ବାହାଲ କରା ହୋଇବ ।

୨୯

କନ୍ତୁ କାଣ୍ଡିଡେଟ୍ ଥିଲେ ତହିଁରେ ।
ପାସ୍ ଲକ୍ଷ୍ୟ ନାହିଁ ଅମ୍ଭ ପାଞ୍ଜିରେ ।
ଯେହେତୁ ସେହେତୁ କାମ ହେଲେ ଭଲ ବଦ୍ୟା ପଣ୍ଟୁରୁ କଏ କାହିଁରେ ।

୩୦

ନିଉଜ୍‌ପେପରରେ ଯେ ଏଡିଟର ।
କାଗଜେ କରବେ କୃପା ମୋହର ।
ଟାଇମ ବୁଝି ମୁଁ ପକାଇବି ତାଙ୍କୁ ଡଫମେଶନ କାଞ୍ଜିଅନୁଦାର ।

୩୧

କେସ୍ ଫୁଟ୍ ହେଉ ଅଥବା ନୋହୁ ।
କଲମରେ ଛଡ଼ ନୋହିବେ ସେନ୍ଥୁ ।
ଫାଇନ୍ ଅଥବା ଇମ୍ପ୍ରିଜନ୍‌ମେଣ୍ଟ ପାଇବେ ଏକ ବା ଉଭୟ ହେଉ ।

୩୨

ଉଡ଼ିଷ୍ୟାରେ ମଫସଲ ଗସ୍ତରେ ।
ପରୁଆନା ଜାରି ହେବ ସହରେ ।
ଜମିଦାରଗଣ ସଜାଇ ରଖିବେ ଫାଉଲ ମାଖନ ଘେ ମୁକାମରେ ।

୩୩

କେହିବା ଉଦ୍ଧତ ଖିଲାପ କଲେ ।
ଜମିଦାରୀ ଖାସେ ଆସିବ ଭଲେ ।
ନୋହିଲେ ବନ୍ଧୁକ ହରକତ କରି ନେବ ତା ଜୀବନ ମୁ କାଲବଲେ ।

୩୪

ଡେଗରେ ଏଣିକି ତେଣିକି ହୋଇ ।
ବୁଲୁବୁଲୁ କରି ଲୋକଙ୍କ ଗୃହିଁ ।
କନ୍ତ୍ରାକ୍ଷଣ ପରେ ବନ୍ଧୁକହସ୍ତରେ ଶିକାରେ ଜଙ୍ଗଲେ ପଶିବ ଯାଇଁ ।

୩୫

ଯାନୁଅର ପକ୍ଷୀ ଯାହା ପାଇବ ।
ହଙ୍ଗେ ଦେଇ ଅସି ଡେଗରେ ହେବ ।
ଫେରି ଫାଇବ ତେଜ ଆମୋଦେ କଠାଇ ସଦରଅଫିସେ ପୁଣି
ଫେରିବ ।

୫୬

ବନ୍ଧୁଗ ହୋଇଲେ ମନ ମୋହର ।
ଫର୍ଗ୍ଲୋ ଜଇ ନେବ ଓ୍ୱାନ ଇପୁର ।
ଫାମିଲ ସଙ୍ଗରେ ଚଳିବ ଜାହାଜେ ସାଗରବକ୍ଷକୁ କର ବଦାର ।

୫୭

ଇଣ୍ଡିଆରେ ଫମ୍ପ ବଢ଼ିଅଭାବ ।
ଗ୍ରେଟ ବ୍ରିଟନରେ କାହ୍ନୁଁ ମିଳବ ।
କୋଠ ଭିନ ମନ ସବୁ ଶେଷ ହେଲେ ଅଉ କ ସାହେବଗିରି ରହିବ ।

୫୮

ପୂର୍ବରୁ ହୋଇଣ ମୁ ସାବଧାନ ।
ଭାରତେ କରୁଛ ଶୁଭାଗମନ ।
ପୁନରପି ଭାଗ୍ୟେ ଫୁଲମୁନ ଆସି ଉଦୟ ହୋଇବେ ପୂର୍ବ ଗଗନ ।

୫୯

ବନ୍ଧୁକାଳ କାର୍ଯ୍ୟେ ନବଷ୍ଟ ହେବ ।
ଲାଠ ଗବର୍ଣ୍ଣର ହେଲେ ହୋଇବ ।
ନୋହିଲେ ସର୍ବିସ ଛାଡ ଭାରତରୁ ବହୁ ଧନ ନେଇ ବସି ଖାଇବ ।

୪୦

ନିତାନ୍ତ ପକ୍ଷରେ ହଜାରେ ଟଙ୍କା ।
ମାସି ପେନସନ ରହନ୍ତୁ ଅଙ୍କା ।
କାହାର ଖାଓ୍ୟାର ଅନ୍ୟଥା ତାହାର କରବ ମୋହର୍ ଫୁରାଏ ବଙ୍କା

ସମ୍ପୂର୍ଣ୍ଣ ।

